*Approved as Text-Book by the Madras University.*

ପୀତାମ୍ବର ଦାସ ରଚିତ

# ଜଡ଼ଭରତଚରିତ ।

ଶ୍ରୀ ଶଙ୍କର ରାଓଙ୍କ ଦ୍ୱାରା

ପ୍ରକାଶିତ ।



ପ୍ରଥମ ସ୍କରଣ ।

The Union Printing Works.
Printer J. Pradhan,
CUTTACK.

1919.

ମୂଲ୍ୟ ଦୁଇଅଣା ମାତ୍ର ।

# ଭୂମିକା ।

ପୌରାଣିକ ଜଡ଼ଭରତ ଚରିତ ଗୋଟିଏ ବିଶେଷ ଶିକ୍ଷାପ୍ରଦ ଉପାଖ୍ୟାନ ଅଟେ । ପରମ ଯୋଗୀ ଋଷଭ ଦେବଙ୍କ ପୁତ୍ର, ରାଜଚକ୍ରବର୍ତ୍ତୀ ଭରତ ନ୍ୟାୟାନୁରୂପ ରାଜ୍ୟ ପାଳନାନ୍ତର ଯଥା ସମୟରେ ପ୍ରବ୍ରଜ୍ୟା ଅବଲମ୍ବନ କରିଥିଲେ । ସେ ମହାତ୍ମା ଜୀବନବ୍ୟାପୀ ଧର୍ମ୍ମପରାୟଣତାର ଯେଉଁ ନିଦର୍ଶନ ରଖି ଯାଇଅଛନ୍ତି ତାହା ଜଗତରେ ଅତୁଳନୀୟ ଅଟେ ।

ବିଜ୍ଞାନାଲୋଚନାରୁ ପ୍ରତିପନ୍ନ ହେଉଅଛି ଯେ ଜଗତ୍ କ୍ରମୋନ୍ନତି ମାର୍ଗରେ ଅଗ୍ରସର ହେଉଅଛି । କିନ୍ତୁ ଭରତଙ୍କ ଚରିତରୁ ଜଣାଯାଏ ମାନସିକ କ୍ରିୟା ପ୍ରଭାବରୁ ଉକ୍ତ କ୍ରମବିକାଶ ନିୟମର ବିପର୍ଯ୍ୟୟ ଘଟିପାରେ । ଭରତ ମାନବଠାରୁ ନିକୃଷ୍ଟ ହରିଣ ପ୍ରତି ଅତ୍ୟନ୍ତ ଆସକ୍ତ ହୋଇଥିବାରୁ ପରିଶେଷରେ ମାନବଠାରୁ ନିକୃଷ୍ଟ ମୃଗତ୍ୱ ପ୍ରାପ୍ତ ହୋଇଥିଲେ । ଏଥିରୁ ଅନୁମାନ ହୁଏ ଯେ ଲୋକ ଆସକ୍ତି ପ୍ରଭାବରୁ ଊର୍ଦ୍ଧ୍ୱଗତି ବା ଅଧୋଗତି ଲାଭ କରିଥାଏ, ଭଗବାନ୍ ଶ୍ରୀକୃଷ୍ଣଙ୍କର ନିମ୍ନଲିଖିତ ଉକ୍ତିରୁ ଏହାର ଯାଥାର୍ଥ୍ୟ ପ୍ରତିପନ୍ନ ହେଉଅଛି ।

ଯାନ୍ତି ଦେବବ୍ରତାଃ ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତା ।
ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ ଯାଜିନୋଽପିମାଂ ॥

ଅତଏବ ଲୋକମାନଙ୍କର ସର୍ବଦା ଈଶ୍ୱରଙ୍କ ପ୍ରତି ଆସକ୍ତ ରହିବା ଏକାନ୍ତ ଉଚିତ । ନଚେତ୍ ପତନ ଅବଶ୍ୟମ୍ଭାବୀ ।

ଏହି ପୁସ୍ତିକା ବର୍ଣ୍ଣିତ ବିଷୟଟି ନୃସିଂହ ପୁରାଣରୁ ଗୃହୀତ ହୋଇଛି। ଏହାର ସବିଶେଷ ବୃତ୍ତାନ୍ତ ଜାଣିବାକୁ ଇଚ୍ଛା କଲେ, ଭାଗବତର ପଞ୍ଚମସ୍କନ୍ଧ ପାଠ କରିବା ଉଚିତ।

ନୃସିଂହ ପୁରାଣର ଏହି ଅଂଶଟି ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ପାଠ୍ୟରୂପେ ନିର୍ଦ୍ଦେଶ କରିଥିବାରୁ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇଲା। ଇଦୃଶ ଶିକ୍ଷାପ୍ରଦ ଉପାଖ୍ୟାନ ପାଠ୍ୟରୂପେ ନିର୍ବାଚନ କରି ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ଛାତ୍ରମାନଙ୍କର ନୈତିକ ଚରିତ୍ର ଗଠନର ସୁବ୍ୟବସ୍ଥା କରିଅଛନ୍ତି, ଆଶାକରୁଁ ଏ ପ୍ରଦେଶରେ ଏହି ପୁସ୍ତକ ଖଣ୍ଡିକ ସର୍ବତ୍ର ସମାଦୃତ ହେବ।

ପ୍ରକାଶକ।

# ଜଡ଼ଭରତଚରିତ ।

ଉର୍ବଶୀ ବୋଇଲେ ବାବୁ ଶୁଣ ମୋର ସୁତେ ।
କାହିଁକ ଜୀବଜନ୍ତୁଙ୍କୁ ମାର ଅନିମିତେ । ୧ ।
ଯେଉଁ ଭରତକୁ ଦେଖ ଏଡ଼େ ହେଲା ଜ୍ଞାନୀ ।
ଜନ୍ମରୁ ହୃଦେ ଭଜିଲା ଗୋବିନ୍ଦଙ୍କୁ ଚିହ୍ନି । ୨ ।
ତଥାପି ଘରୁ ପଦାକୁ ଯେବେ ବାହାରଇ ।
ପିମ୍ପୁଡ଼ି ମାରିବ ବୋଲି ଚଳେ ଡେଇଁ ଡେଇଁ । ୩ ।
ମୂର ବୋଇଲା କହିଲା ମାତା ଯେଉଁ ବାଣୀ ।
ଭରତ ବୋଲିଣ ସେହୁ କାହା ପୁତ୍ର ପୁଣି । ୪ ।
ବାଳକ ଦିନୁ ସେ କେମନ୍ତେ ଭଜିଲା ହରିଙ୍କେ ।
ଆଜ ପର୍ଯ୍ୟନ୍ତେ ଆମ୍ଭେ ତ ନାହୁଁ କଥା ତର୍କେ । ୫ ।
ଉର୍ବଶୀ ବୋଇଲେ ତେବେ ଶୁଣ ତାର କଥା ।
ଭରତର ପରିଗୁଣ ଯେବଣ ବ୍ୟବସ୍ଥା । ୬ ।
ଯେଉଁ କାଳେ ସୃଷ୍ଟି ସରଜିଲେ ବାସୁଦେବ ।
ବ୍ରହ୍ମାର ଅଙ୍ଗରୁ ଜାତ ହେଲେ ସ୍ୱୟମ୍ଭୁବ । ୭ ।
ସେ ସ୍ୱାୟମ୍ଭୁବର ପୁତ୍ର ହେଲା ପ୍ରିୟବ୍ରତ ।
ଅଗ୍ନୀଧ୍ର ପ୍ରିୟବ୍ରତର ଅଂଶେ ହେଲେ ଜାତ । ୮ ।
ଅଗ୍ନୀଧ୍ରଙ୍କର ବୀର୍ଯ୍ୟରୁ ହେଲେ ପୁଣି ନାଭ ।
ତାହାଙ୍କର ପତ୍ନୀ ପୁଣି ପ୍ରସବେ ଋଷଭ । ୯ ।

ବୃଷଭଙ୍କର ନନ୍ଦନ ହୋଇଲେ ଭରତ ।
ଯେ ଭରତ ଭକ୍ତିଗୁଣେ ହେଲେ ଅଲୌକିତ । ୧୦ ।
ଏ ପୃଥ୍ୱୀରେ ରାଜା ଯେତେ ହେଲେ ଜନାକେତେ ।
ଭରତ ଖଣ୍ଡ ବୋଲି ନାମ ଦେଲେ ମହୀପତେ । ୧୧ ।
ସତ୍ୟଯୁଗରେ ପାଳନ୍ତି ଯେହ୍ନେ ଜନ ପ୍ରଜା ।
କେବେ ସତ୍ୟ ନ ଛାଡ଼ଇ ସେ ଭରତ ରାଜା । ୧୨ ।
ଦେବ ଇନ୍ଦ୍ର ଶିବ ବିଷ୍ଣୁ ସାଧୁ ଦ୍ୱିଜଜନେ ।
ସମସ୍ତଙ୍କୁ ସେବା ଯେହ୍ନେ କରେ ତୋଷମନେ । ୧୩ ।
ଏମନ୍ତ କେତେକ ଦିନେ ଭାଗ୍ୟ ତାର ଦେଖ ।
ଗୋବିନ୍ଦଙ୍କ ଚରଣରେ ସେବିଲା ଅନେକ । ୧୪ ।
କାଳେ ତାହାଙ୍କୁ ସଦୟା କଲେ ଭଗବାନ ।
ଧ୍ୟାନେ ବସନ୍ତେ ଆସିଣ ଦେଲେ ଦରଶନ । ୧୫ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ ।
କଣ୍ଠରେ ଯେ ବନମାଳା କଉସ୍ତୁଭ ଲାଇ । ୧୬ ।
ସପତ-ଶାଖା-ମୁକୁଟ ଶିରେ ଦିଶେ ଶୋଭା ।
ଦରହାସ ମୁଖ ଦିଶେ ପଦ୍ମନେତ୍ର ଆଭା । ୧୭ ।
ହୃଦେ କମଳା ଶ୍ରୀବତ୍ସ ଚିହ୍ନ ଗୋଟି ଶୋହେ ।
କଟୀରେ ପୀତବସନ ଜଗଜ୍ଜନ ମୋହେ । ୧୮ ।
ଅରକ୍ତ ପଦ୍ମ ସଦୃଶ ଦିଶେ ପାଦ ବେନି ।
ଏମନ୍ତେ ଭରତେ ଦେଖା ଦେଲେ ରୂପ ଘେନି । ୧୯ ।
ଗୋବିନ୍ଦର ରୂପ ଦେଖି ସେ ଭରତ ରାଜା ।
ମନେ ମନେ ନମିଣ ଯେ କଲେ ପାଦ ପୂଜା । ୨୦ ।

ପାଇଲେ ବିଷ୍ଣୁଙ୍କୁ ବର ମାଗି ପଞ୍ଚପୁତ୍ର ।
ତହୁଁ ଜ୍ୟେଷ୍ଠପୁଅଙ୍କୁ ସେ ଦେଲେ ଦଣ୍ଡ ଛତ୍ର । ୧୧ ।
ଲକ୍ଷେ ବର୍ଷ ଯାଏ କଲେ ରାଜପଣ ଭୋଗ ।
ତହିଁ ଉତ୍ତାରୁ ସେ ପୁଣ ଜନ୍ମିଲା ବୈରାଗ୍ୟ । ୧୨ ।
ସଂସାରରୁ କାମ ଲୋଭ ମୋହ ଦେଲେ ଛାଡ଼ି ।
ଭଜିଲେ ସେ ଗୋବିନ୍ଦଙ୍କ ପାଦେ ଚିତ୍ତ ବଢ଼ି । ୧୩ ।
ରାଜ୍ୟଭାର ଦେଇକରି ଚଳିଲେ ଏକାନ୍ତେ ।
ବୁଲିଲେ ଯାବତ ତୀର୍ଥଯାକ ଦିନା କେତେ । ୧୪ ।
ବିଷ୍ଣୁଙ୍କୁ ସେବି ବ୍ରହ୍ମାଣ୍ଡଯାକ ପୁଣି ଭ୍ରମେ ।
ପ୍ରବେଶ ହୋଇଲେ ଆସି ପୁଲହ ଆଶ୍ରମେ । ୧୫ ।
ପାପ ରାଶି ବିନାଶଇ ଯେଉଁ ମହାତୀର୍ଥ ।
ବିଷ୍ଣୁ ଠାରୁ ଜନ୍ମି ପୃଥ୍ୱୀ କରଇ ପବିତ୍ର । ୧୬ ।
ସେ ତୀର୍ଥେ ପୁଲହ ରହିଛନ୍ତି ଗ୍ରାମ ବାନ୍ଧି ।
ମହା ନିର୍ମଳ ହୋଇଣ ବହେ ଗଙ୍ଗା ନଦୀ । ୧୭ ।
ସେ ସ୍ଥାନ ଦେଖି ଭରତ ରହିଲେକ ସୁଖେ ।
ପୁଲହ ମୁନିଙ୍କ ଆଶ୍ରମର ପୂର୍ବମୁଖେ । ୧୮ ।
ପୂଜିଲେ ବିଷ୍ଣୁ ପ୍ରତିମା ସ୍ଥାପି ମହୀପାଳ ।
ଲକ୍ଷେ [illegible] ଯାଏ ଭକ୍ଷ୍ୟ କଲେ ଗଙ୍ଗାଜଳ । ୧୯ ।
ସୁସ୍ୱାଦୁ ସୁପକ୍ୱଫଳ ମୂଳ ରସ ଯେତେ ।
ବିଷ୍ଣୁଙ୍କୁ ସମର୍ପି ତାହା ଭକ୍ଷଇ ସେ ନିତ୍ୟେ । ୨୦ ।
ସବୁ ଅନ୍ତା ସଂସାରରେ ଦେଖେ ମନକରି ।
ସଦାନନ୍ଦ ପୁରୁଷ ଯେ ଅଛି ତହିଁ ମଧ୍ୟ । ୨୧ ।

ପରମପୁରୁଷଙ୍କୁ ଯେ ଦେଖି କର ଗ୍ୟେ ।
ଜୀବଛନ୍ଦାଦ୍ୱାରେ ନେଇ ଜୀବନ ଥକାଏ । ୩୨ ।
ମନ ଆଉ ପବନକୁ କରଣ ଏକଭୁ ।
ଗୋବିନ୍ଦଙ୍କୁ ଭଜଣ ଯେ ରହିଲା ଭରତ । ୩୩ ।
ତିନ ଜନ୍ମ ପରଯନ୍ତେ ବିଷ୍ଣୁ ଭଜୁଥିଲା ।
ତହୁଁ ଉତ୍ତାରୁ ସୁଖରେ ବୈକୁଣ୍ଠକୁ ଗଲା । ୩୪ ।
ଏହା ଶୁଣି ମୁରାସୁର ପୃଚ୍ଛିଲା ଲୋଡ଼ି ।
ବୋଲେ କହ ଆଗ ଭରତର ପ୍ରସଙ୍ଗଟି । ୩୫ ।
କିମ୍ପା ଭରତର ଜନ୍ମ ହେଲା ତିନଥର ।
କେଉଁ କନ୍ଦେ କାଏ ପିତା ଅଟଇ ତାହାର । ୩୬ ।
ଉର୍ବଶୀ ବୋଇଲେ ବାବୁ କହିବା ତା ଶୁଣ ।
ପ୍ରଥମ ଜନ୍ମର ବୁଝିଲଡ ପରଗୁଣ । ୩୭ ।
ଦ୍ୱିତୀୟ ଜନ୍ମର ଭୁ ହୋ ଶୁଣ ଏବେ ବାଣୀ ।
ମୃଗୁଣୀ ଗର୍ଭରେ ଯାଇ ଜାତ ହେଲା ପୁଣି । ୩୮ ।
ଯେଉଁରୂପେ ଜନମିଲା ଶୁଣ ସେ ବିଧାନ ।
ଗଙ୍ଗାରେ ପଶି ଭରତ କରୁଥିଲା ସ୍ନାନ । ୩୯ ।
ଗର୍ଭବାସ ହୋଇକରି ଏକଇ ମୃଗୁଣୀ ।
ତୃଷାତୁରେ ଆସିଥିଲା ପିଇ ନଦୀ ପାଣି । [illegible] ।
ସନ୍ତୋଷେ ପାଣି ପିଇଣ ପଶିଇଲା ଗର୍ଭ ।
ଏସମୟେ ବନରେ ଯେ ସିଂହ କେଲା ରବ । ୪୧ ।
ଡେଇଁଲା ଭୟିଲା ପ୍ରାୟେ ମଣି ମୃଗାକ୍ଷୀ ।
ଏକେ ଜଳଗ୍ରାସ ପୁଣି ଦୁଃଯେ ଗର୍ଭ ଭାର । ୪୨ ।

ଚମକ ପଡ଼ିଲା ଯେଉଁଠାରେ ହୋଇ ଛନ୍ନ ।
ଗର୍ଭ ଫାଟିଣ ବାଳକ ହୋଇଲା ଉତ୍ପନ୍ନ । ୪୩ ।
ତାହା ଦେଖି ଭରତ ଯେ ହୃଦେ ମହାଦୁଃଖୀ ।
ସ୍ନେହେ ମୃଗୁଣୀ ପିଲାକୁ ଧଇଲେକ ଟେକି । ୪୪ ।
ଏବେତ ସେ କୃଷ୍ଣ ଭକ୍ତ ସର୍ବଜୀବେ ଦୟା ।
ତେଣୁ ସେହି ମୃଗପୁତ୍ରେ ବଳାଇଲେ ସ୍ନେହା ।୪୫ ।
ସେ ବାଳକକୁ ଘେନିଣ ଆଶ୍ରମକୁ ଗଲେ ।
ଜଳ ତୃଣ ଦେଇ କରି ଅଧ୍ୟାପି ପୋଷିଲେ । ୪୬ ।
ଶୁଣ ଅରେ ମୁନିସ୍ୱର କହନ୍ତି ଉର୍ବଶୀ ।
ଦିନୁ ଦିନୁ ଭରତ ସଙ୍ଗେ ମୃଗ ମନ ମିଶି । ୪୭ ।
ବିଷ୍ଣୁ-ମାୟାରେ ସେ ପଡ଼ି ମୃଗେ ମନ ଦିଅନ୍ତେ ।
କାଳେ ସେହି ମୃଗ ମରିଗଲା ଯେ କେମନ୍ତେ । ୪୮
ଭରତ ମୃଗର ମୃତ୍ୟୁ ଦେଖି ହତଜ୍ଞାନ ।
ଅଶନ ଗମନ ବେଳେ କରନ୍ତି ରୋଦନ । ୪୯ ।
ଅହା ଅହା ମୃଗ ବୋଲି ପଡ଼େ ଭୂମି ଲୋଟି ।
ଉଠି ବସିକରି ପୁଣ କାନ୍ଦନ୍ତି କୁହାଟି । ୫୦ ।
ଯହିଁକି ଗୃହିଁଲେ ତହିଁ ଦିଶେ ମୃଗରୂପ ।
ମହାମନ୍ତ୍ର ପ୍ରାୟେ ତାକୁ ଭଲେ ସେହି ଜପ । ୫୧ ।
ମୃଗ ମୃଗ ବୋଲି କଲେ ଅନେକ ସେ ଚିନ୍ତା ।
ଅଧାର ନିଦ୍ରାଦି ହେଲା ତାଙ୍କୁ ସବୁ ପିତା । ୫୨ ।
ଚିନ୍ତାରେ ଯେ ଗଲା ତାଙ୍କ ତନୁ ଗୋଟି ସଢ଼ି ।
ଝୁରି ଝୁରିଣ ଭରତ ପ୍ରାଣ ଗଲା ଛାଡ଼ି । ୫୩ ।

ଆତ୍ମାକୁ ସେ ତ୍ୟାଗ କରି ମୃଗେ ଲୀନ ଗଲେ ।
କାଳେ ସେହୁ ଗର୍ଭିଣୀର ଗର୍ଭେ ଜନ୍ମିଲେ । ୫୪ ।
ବନରେ ଥାଇ ପଢ଼ିଲେ ସେହୁ ମୃଗପଲେ ।
କେବଳ ଜାଣନ୍ତି ପୂର୍ବ-ଜନ୍ମ ଚେତାଇଲେ । ୫୫ ।
ମନେ ପଡ଼ିଲେ ପାଞ୍ଚନ୍ତି ପୁଣି ମନ ବୋଲି ।
ବୋଲନ୍ତି ଅଭାଗ୍ୟରୁ ମୁଁ ପଶୁ ଜନ୍ମ ହେଲି । ୫୬ ।
କେତେ 'ସୁଖ ଥିଲା ଗଲା ମୋର ପୂର୍ବକଥା ।
ଏବେତ ପଶୁ ଜନମ ହେଲା ଅପି ବୃଥା । ୫୭ ।
ଦେଖତ ମୋହର କର୍ମ ହେଲା ଏଡ଼େ ବାମ ।
ଗୋବିନ୍ଦଙ୍କ ସେବା ଛାଡ଼ି ଭୁଞ୍ଜିଲି ଅକର୍ମ । ୫୮ ।
ମୃଗେ ସ୍ନେହ କରି ମୁହିଁ କଲି ଏଡ଼େ ଅଶ ।
ତେଣୁ ପଶୁ-ଜନ୍ମ ମୋତେ ଦେଲେ ପୀତବାସ । ୫୯ ।
ଏବେ କେମନ୍ତେ ଲେଉଟି ହୋଇବି ମାନବ ।
ଏଥିପାଇଁ ଦୟା ଅବା କରିବେ ସେ ଦେବ । ୬୦ ।
ଏମନ୍ତ ପାଞ୍ଚ ମନରେ ଭାଳି ଦିନୁ ଦିନୁ ।
ଆହାର ନ ଖାଇ କଲେ ଦୁର୍ବଳ ଯେ ତନୁ । ୬୧ ।
ଦେହ କ୍ଷୀଣ କରି କାଳେ ଲଭିଲେକ ମୃତ୍ୟୁ ।
ଲେଉଟି ଜନ୍ମିବା ଶୁଣ ତାଙ୍କ ଜନ୍ମ ତତ୍ତ୍ୱ । ୬୨ ।
ବୁଝରେ ମୁର ଦାରୁଣ ଭରତ ମହିମା ।
ବିପ୍ରକୁଳେ ତହୁଁ ଜନ୍ମ ହେଲେ ମହାତ୍ମା । ୬୩ ।
ଅଯୋଧ୍ୟା ନାମରେ ଦେଶ ଉତ୍ତର ପାରୁଶ ।
ଅଙ୍ଗିର୍ ପ୍ରବର ନାମ ବିପ୍ର-ଶ୍ରେଷ୍ଠ ବାସ । ୬୪ ।

ତାର ଗର୍ଭେ ଜନ୍ମିଲେ ଛଅଗୋଟି ପୁତ୍ର ।
ଶେଷେ ଯାଇ ପୁଣ ଜନ୍ମ ହୋଇଲେ ଭରତ । ୭୫ ।
ଏ ପ୍ରକାର ଛଅ ପୁତ୍ର ପାଳନ୍ତି ସେ ଦ୍ୱିଜ ।
ବେଦ ବିଦ୍ୟାରେ ନିର୍ଜିତ ହୋଇଲେ ତନୁଜ ।୭୬।
ଦେଖିଲେ କନିଷ୍ଠ କୁମରର ସାଧୁ ବୁଦ୍ଧି ।
ସୁଶୀଳ ଦୟାବନ୍ତ ସେ ଅମ୍ବାରେ ଅକ୍ରୋଧୀ । ୭୭ ।
ସଦବୁଦ୍ଧି ଦେଖିକରି ପିତା ଭରତର ।
ଅନେକ ବିଦ୍ୟା ଶିଖାଇ ଅଣି ତତ୍ତ୍ୱସାର । ୭୮ ।
ଋଗବେଦ ଛଅ ଶାସ୍ତ୍ର ପୁରାଣାଦି ଯେତେ ।
ସବୁ ପଢ଼ନ୍ତି ଭରତ କୃଷ୍ଣ ପ୍ରୀତ ଅର୍ଥେ । ୭୯ ।
ପ୍ରବୀଣର ତତ୍ତ୍ୱଯାକ ମନେ ସବୁ ହେକ ।
ବସିଲେ ସେ ଗୋବିନ୍ଦଙ୍କୁ ଅନୁବ୍ରତେ ଭଜ । ୮୦ ।
ଜ୍ଞାନେ ଜଡ଼ ହୋଇ କଲେ ନିବୃତ୍ତ ଯେ ମନ ।
ତେଜିଲେ ସେ ମାୟା ମୋହ, ଇନ୍ଦ୍ରିୟ ଦମନ । ୮୧ ।
ମାନ ଅପମାନ ଦୁଃଖ ସୁଖ ଅମରଷ ।
ଶୟନେ ଭୋଜନେ ମନେ ନାହିଁ କିଛି ପ୍ରାସ । ୮୨ ।
ଜ୍ଞାନ-ରସ ପାନେ ହେଲା ପୂର୍ଣ୍ଣ ତାର ଦେହୀ ।
ଯେତେବେଳେ ଯାହାମିଳେ ତାହା ସେ ଘେନଇ ।
ଏହୁପର କିଛି ଦିନେ ମଲେ ତାଙ୍କ ପିତା ।
ଜଡ଼ଭରତ ପୁତ୍ରଙ୍କୁ ଧଇଲେକ ମାତା । ୮୪ ।
ଜ୍ୟେଷ୍ଠ ପୁତ୍ରଙ୍କର ପାଶେ ନେଇ ସମର୍ପିଲେ ।
ଭରତର କଥା ବାବୁ ଲଗିଲ ବୋଇଲେ । ୮୫ ।

ପତିବ୍ରତା ପଣେ ଦେଲେ ଅନଳେ ସେ ଝାସ ।
ଏଥିଅନ୍ତେ ବାଣୀ ଶୁଣ ଭରତଙ୍କ ରସ । ୭୬ ।
ଭିକ୍ଷୁ ବନେ ଭାଇମାନେ କଲେ ଅନାଦର ।
ବୋଇଲେ ଏହାର ଜଡ଼ ହୋଇଲା ଶରୀର । ୭୭ ।
ଆନ କଥାମାନଙ୍କୁ ଏ ନ ପାରଇ ଅଇ ।
ବଟ ବୃକ୍ଷ ମୂଳେ ବସି କ୍ଷେତ୍ର ଜଗି ଥାଉ । ୭୮ ।
ଏମନ୍ତ ବୋଲିଣ ତାଙ୍କୁ ନେଲେ ଛଅ ଭ୍ରାତ ।
ବଟ ମୂଳରେ ବସାଇ ଜଗାଇଲେ କ୍ଷେତ । ୭୯।
ମହତ ବୃକ୍ଷ ବିସ୍ତାର ଅଟ୍ଟ ସେହୁ ହୋଇ ।
ନାନା ପକ୍ଷୀ ବସା କରି ରହିଛନ୍ତି ତହିଁ । ୮୦ ।
ତାଙ୍କୁ ଦେଖି ଭରତ ଯେ ନ କହନ୍ତି ଭାଷା ।
ପାଞ୍ଚନ୍ତି ଗୋବିନ୍ଦଙ୍କର ପଦ ହୃଦେ ବସା । ୮୧ ।
ଅଛନ୍ତି ଯାବତ ହୃଦପୁରେ ଭଳେ କରି ।
କୀଟରୁ ବ୍ରହ୍ମଯାଏ ତ ସର୍ବେ ନରହରି । ୮୨ ।
କ୍ରୀଡ଼ନ୍ତି ଅଣୁପ୍ରମାଣେ ବସି ନାନା ହୃଦେ ।
ଅଜ୍ଞାନ ସ୍ୱଭାବେ ତାହା ନ ଚିହ୍ନନ୍ତି ମଦେ । ୮୩ ।
କେ କାହାକୁ କି ବୋଲିବ ସମସ୍ତେତ ହରି ।
ଧ୍ୟାନରେ ବସି ପରମ ଜ୍ଞାନ ଲକ୍ଷ୍ୟ କରି । ୮୪ ।
ଏମନ୍ତେ ଭରତ ରହିଲେକ ସେହୁ ସ୍ଥାନେ ।
ପକ୍ଷୀ ବନ୍ଧିବାକୁ ବ୍ୟାଧ ଆସେ ଏକଦିନେ । ୮୫ ।
ଯୋଖିଲା ବୃକ୍ଷ ଶିଖରୁ ଗୃହିଁ ନଳକାଠି ।
ତାହା ଦେଖନ୍ତି ଭରତ ଊର୍ଦ୍ଧ୍ୱେ ଦେଇ ଦୃଷ୍ଟି । ୮୬ ।

ଯେ ଦୁଷ୍ଟ ବ୍ୟାଧକୁ ଭୃତ ନ ଦେଇ ସମାସ୍ୟା ।
ଯାସ୍ବଲେ କରୂପେ ମୁହିଁ ଭାଙ୍ଗିବ ସେ ଆଶା । ୮୬ ।
ମାରବା ମରବା ସବୁ କଥା ସେହି ହେବ ।
କାହାକୁ ମାରଇ ନାଏ ବାହାକୁ ସେ ଛାଡ଼ । ୮୮ ।
ଏମନ୍ତ ବୋଲନ୍ତି ଭରତ ମନ୍ତ୍ରେନେ ରହିଲ ।
ଶୁଣରେ ପୁତ୍ରେ ବ୍ୟାଧର ମୂର୍ଦ୍ଧନ ଫୁଟିଲା । ୮୯ ।
ଅଦୋଷୀ ଜୀବକୁ ହତ ଅଦୋଷେ ଯେ କରେ ।
କାଳେ ସେହି ଅପମୃତ୍ୟୁ ଲଭଇ ସଂସାରେ । ୯୦ ।
ନୋହିଲେ ବା ସେହିକ୍ଷଣି ପତନ ହୁଅଇ ।
ଭରତଙ୍କ କଥା ଶୁଣ ପୁଣ କହୁ ଥାଇଁ । ୯୧ ।
ସେ ଦେଶର ନରପତି କରେ ଦେବୀ ପୂଜା ।
ଦୁର୍ଗାଙ୍କୁ ସେ ନୈବେଦ୍ୟ ନେଇ ଦିଏ ବଳଭୁଜା । ୯୨ ।
ନର-ଜନ୍ତୁ ଗୋଟି ଏକ ରକ୍ଷି ଥାଇ ବନ୍ଦୀ ।
ଆଜର କାଲି କାଲିର ପରଦିନେ ଛେଦ । ୯୩ ।
ଏହିରୂପେ ପ୍ରତିଦିନ ମାରେ ଜଣେ ନର ।
ଏକଦିନେ ଫିଟିଗଲା ବନ୍ଧାଜୀବ ତାର । ୯୪ ।
ସେ ରୂପେ ନଗରେ ଲୁଚି ପଳାନ୍ତେ ବନ୍ଧରୁ ।
ଦେଖିଣ ବ୍ୟାକୁଳ ରାଜା ହେଲା ପ୍ରଭାତରୁ । ୯୫ ।
ପେଷି ଲୋକବର୍ଗ ଖୋଜାଇଲା ଦଶ ଦିଶ ।
କାହିଁ ବନ୍ଦ୍ୟ କନ୍ଦର ଗିରି ବନ ଦେଶ । ୯୬ ।
ଏମନ୍ତେ ସେ ଖୋଜୁ ଖୋଜୁ ମିଳିଲ ବଟମୂଳେ ।
ଦେଖିଲେ ବସିଛି ଜଣେ ମନର ହରଷେ । ୯୭ ।

ନିର୍ଲଜ୍ଜ ସେ ନିରହଙ୍କାରୀ କଥା ନ କହଇ ।
ଯାହାକୁ ଦେଖିଲେ ବୋଲେ କୃଷ୍ଣ ଏକା ଏହି । ୯୮ ।
ଶ୍ରୀହରିର ରସ ପାଇ ବିଶାଳ ତା ଦେହ ।
କେହି ତାକୁ ନିନ୍ଦୁଥିଲେ ହସେ ଠହ ଠହ । ୯୯ ।
ଦେଖି କରି ଦୂତମାନେ ନେଲେ ତାଙ୍କୁ ଧରି ।
ରାଜାର ସମ୍ମୁଖରେ ନେଇ ଦେଲେ ବାନ୍ଧି କରି । ୧୦୦ ।
ନରପତି ଆଜ୍ଞା ଦେଲେ କାହିଁର ଏ ନର ।
ଦୁର୍ଗାଙ୍କୁ ମିଳିଲା ଏବେ ଅଷ୍ଟ ଉପହାର । ୧୦୧ ।
ଏହାକୁ ନେଇଣ ବେଗେ ଦେବୀଆଗେ ଦିଅ ।
ସମ୍ମୁଖରେ ଜଗାଇ ବୋଲ ବେଳା ବେଳ ଖାଅ । ୧୦୨ ।
ରାଜ-ଆଜ୍ଞା ପାଇଁ ଦୂତେ ନେଲେ ଯାଉକାରେ ।
ଭୃତକୁ ଭରିଲେ ନେଇ ଦେବୀ-ଦେଉଳରେ । ୧୦୩ ।
ନିର୍ବନ୍ଧେ ଭରତ-ଗୁରୁଚରଣକୁ ଛନ୍ଦି ।
ଦୁର୍ଗାଙ୍କର ଆଗେ ନେଇ ପକାଇଲେ ବାନ୍ଧି । ୧୦୪ ।
ବୋଇଲେ ମାଗୋ ଏହାକୁ ଭୁଞ୍ଜି ସୁଖେ ଖାଅ ।
ରାଜ୍ୟ ଜନମାନଙ୍କୁ ଯେ ରକ୍ଷା କରି ଥାଅ । ୧୦୫ ।
ଏତେ ବୋଲିଣ ଅର୍ଗଳ କଲେ ନିର୍ବନ୍ଧେ ।
ଯେ ଯାହା ରାଜ୍ୟକୁ ଚଳିଗଲେ ଗୃହବୃନ୍ଦେ । ୧୦୬ ।
ଏଥି ଉତ୍ତାରେ ଭରତ ତହିଁ ଥିଲା ପଡ଼ି ।
ବସ୍ତ୍ର ପୂରନ୍ତେ ଦଉଡ଼ି ଗଲା ତାର ଛିଡ଼ି । ୧୦୭ ।
ଏତେକ କଥା ଗୋଚର ନାହିଁ ତାଙ୍କୁ କିଛି ।
ମନକୁ ସେ ବନ୍ଧୁରବନ୍ଧେ ନେଇ ପୂରାଇଛି । ୧୦୮ ।

ପଦ୍ମ ଆସନରେ ବସି ଭଜେ ନାରାୟଣ ।
ସବୁ ଜୀବଙ୍କୁ ଗୋବିନ୍ଦ ବୋଲେ ଏକା ଜାଣ । ୧୦୯ ।
ଏମନ୍ତ ପାଠ୍ୟ କରନ୍ତେ ବିଷ୍ଣୁଙ୍କୁ ସେ ଲୟ ।
ଦେଖିଣ ଲାଗିଲା ଚଣ୍ଡିକାଙ୍କୁ ମହାଭୟ । ୧୧୦ ।
ପାଷ୍ଟିଲେ ଚଣ୍ଡିକା ଏତ ଅନାଦର ବାସ ।
ଏହାଙ୍କୁ ବନାଶି ମୂର୍ଦ୍ଧି ଅର୍ଜିବ କ ଯଶ । ୧୧୧ ।
ଗୋବିନ୍ଦର ଭକ୍ତଙ୍କୁ ନ ଚିହ୍ନି ମୂର୍ଖଜନେ ।
ଖାଅ ବୋଲିଣ ପଶ୍ଚିଁ ଗଲେ ମୋତେ କେଣେ । ୧୧୨
ଏଡ଼େ ଭକ୍ତଙ୍କୁ ସେ ମନ୍ଦ ପାପ୍ତଣ ପାମରେ ।
କ ବୋଲି ସେ ଭକ୍ଷ୍ୟ ବୋଲି ଛାଡ଼ିଲେ ମୋ ଘରେ
ବିଷ୍ଣୁ ସେବକଙ୍କୁ ଯେବେ ଚିନ୍ତନ୍ତିକ ମନ୍ଦ ।
ନିଶ୍ଚୟ ମୃତ୍ୟୁ ବଢ଼ିଲେ ତାଙ୍କୁ ଅଦକନ୍ଦ । ୧୧୪ ।
ଚଣ୍ଡିକା ଉଠିଲେ ଏତେ ବୋଲି କୋପାନଳେ ।
ଧାଇଁଲେ ଦୈରଙ୍ଗଣ [illegible]ଧନ ବିକରାଳେ । ୧୧୫ ।
ରାଜାର ବୃନ୍ଦେ ପଶିଲେ ଯାଇଁ ମହାମାରି ।
ପୃର ଯାକ ଭସ୍ମ କରି ଦେଲେ ସବୁ ଖାଇ । ୧୧୬ ।
ଶୁଣରେ ମୁରବାରୁଣ ଭକ୍ତଗୁଣ ଏଥେ ।
ନ ଜାଣି ଲଗନ୍ତି ଭକ୍ତ ଭୁଲେ ମିନା ମୂନ୍ତେ । ୧୧୭ ।
ଏଡ଼େ ସଙ୍କଟୁ ରଖିଲେ ଦେବ ନାରାୟଣ ।
ଭରତ ବଷୟ ପୁଣି କହୁଅଛୁ ଶୁଣ । ୧୧୮ ।
ତାହାଙ୍କ ସେହୁ ବଟମୂଳେ ବାନ୍ଧିଲେକ ଆନି ।
ଶ୍ରୀଧର ନାମ ଗୋଟି ହୃଦପଦ୍ମେ ଜପନ୍ତି । ୧୧୯ ।

ଏଥୁ ଅନନ୍ତରେ ଶୁଣ ସୂର୍ଯ୍ୟବଂଶ ରାଜ ।
ରହୂଗଣ ନାମ ତାର ହେଲେ ବେଗେ ସଜ ।୧୨୦।
ଯିଇଲେ ଜୀବ ମାରିବା ପାଇଁ ଘୋର ବନେ ।
ବିମାନ ବହି ତାର ନ ପାରିଲା ଜଣେ ।୧୨୧।
ଭ୍ରମେଣ ଯେ ଥାଏ ଥାଏ ମିଳ ବଟମୂଳେ ।
ଦେଖିଲେ ଜଡ଼ଭରତ ବସିଛ ଜଙ୍ଗଲେ ।୧୨୨।
ଗୋବର୍ଦ୍ଧନର ମକରନ୍ଦରସଭୁଞ୍ଜା ଭୂତ ।
ବଳିଷ୍ଠ ଦିଶୁଅଛଇ ଦେଖି ହୋଇ ପତ ।୧୨୩।
ମହାସମର୍ଥ ବୋଲିଣ ନେଲେ ତାଙ୍କୁ ଝିଙ୍କି ।
ରାଜାଙ୍କୁ ବୋଇଲେ ଯାକୁ ବୁହାଅ ପାଲିଙ୍କି ।୧୨୪।
ଭରତଙ୍କୁ ଦେଖି ତୋଷ ହେଲେ ରହୂରାଜା ।
ବୋଇଲେ ଏହାଙ୍କୁ ବେଗେ ଦିଅ ପଡ଼ ଆଜ୍ଞା ।୧୨୫।
ନୃପାଜ୍ଞା ଶୁଣି ହାଣ୍ଠୋଳା ବହିଲେ ଭୂପତି ।
ଗୋବର୍ଦ୍ଧନଙ୍କୁ ମନେ ସ୍ମରି ସେ ଜଡ଼ଭରତ ।୧୨୬।
ବାଧରେ ଯେ ଦୁଃଖ ସୁଖ ଯେବେ ଏକ କରି ।
ବିଶ୍ୱର କହ୍ନଇ କାହ୍ନୁ ବ୍ରହ୍ମଯାଏ ହରି ।୧୨୭।
ଯାବତ ଶରୀର ଅଟେ ଗୋବର୍ଦ୍ଧନର ଦେହା ।
ଚଉଦ ଲୋକ ଯେପାରେ ଗତି ମୁକ୍ତି ପାଇଁ ।୧୨୮।
ଏମନ୍ତ ମନରେ ପାଞ୍ଚି ଯାନେ ବହି ଯାନ୍ତେ ।
ତଳରେ କ୍ଷୁଦ୍ରଜନ୍ତୁ ଯେ ଦେଖିଲା ଚାଲନ୍ତେ ।୧୨୯।
ପଶିବ ଚରଣ ବୋଲି ମହା ଭୟ ପାଇ ।
ଡାଳ ଡାଳ ହୋଇ ଯେହ୍ନେ ଗଲେ ଡେଇଁ ଡେଇଁ ।୧୩୦।

ଚରଣ ଉଣ୍ଚାସି ପକାନ୍ତେ ସେ ଏଣେ ତେଣେ ।
ବିମାନ ହୋଇଲା ଯାନ୍ତେ କମ୍ପେ ଋତୂ ସଣେ । ୧୩୧ ।
ରାଜା ବୋଇଲେ ତୋହର ନାହିଁ କରେ ଜ୍ଞାନ ।
ଅମ୍ଭର ବିମାନ ଗୋଟି ଚଳେ ଅନ ଆନ । ୧୩୨ ।
ଶୁଣି କହ ଭୂତ୍ୟ ଜନେ ଯୋଡ଼ି ବେନ କର ।
ବୋଇଲେ ପାଲିଙ୍କି ଏହା ଲାଗି ନୋହେ ସ୍ଥିର । ୧୩୩ ।
ଏମନ୍ତ ବାକ୍ୟ ସେବକ ମୁଖରୁ ସେ ଶୁଣି ।
ମନରେ ଯେ କ୍ରୋଧଭର ହୋଇ ନୃପମଣି । ୧୩୪ ।
ବୋଇଲେକ ରହୂରାଜା ଭରତକୁ ଚାହିଁ ।
ଅଛଇ ବଳଷ୍ଟତ ଅଟେ ତୋର ଦେହି । ୧୩୫ ।
ବଳବନ୍ତ ପଣେ କେହି ନୋହିବେତ ସର ।
ଏତେ ସମ୍ଭବ ହୋଇ ତୁ ଚାଲୁଛୁ କପର । ୧୩୬
ଆମ୍ଭ କଥା ମାନ ବହ ବିମାନକୁ ଧୀରେ ।
ଏଥୁଁ ଆନ ହେଲେ ତୋତେ ଦଣ୍ଡ ଦେବି ମୁଁ ସତ୍ୱରେ । ୧୩୭ ।
ଏମନ୍ତ କହି ବସିଲେ ରାଜା ହୋଇ ତୁନ ।
କଷ୍ଟେ ଲଘୁ କରି ଚାଲେ ସେ ଭରତଙ୍କ ମନ । ୧୩୮ ।
ରାଜାର କଥା ଯାକ ନ ପଶେ ତାଙ୍କ କର୍ଣ୍ଣେ ।
ଚରଣ ପକାଇ ସେ ଚାଲେ ହରି ଧ୍ୟାନେ । ୧୩୯ ।
ଲେଉଟି ବିମାନ ତାର ହାଲ୍ଲୋଳନ୍ତେ ରାଜା ।
ହୃଦେ ବ୍ୟଥା ପାଇଣ ସେ କହନ୍ତି ତରଜା । ୧୪୦ ।
ରହୂରାଜା ବୋଇଲେ ରେ ଶୁଣ ମନ୍ଦ ବାଇ ।
ମୋର କଥା କି ତୋହର କର୍ଣ୍ଣେ ନ ପଶଇ । ୧୪୧ ।

ସ୍ତ୍ରିରେଣ ଗମେବା ଲଭ ଗୃଲ୍ଲ ବାଙ୍କ ବାଙ୍କ ।
ଧୈର୍ଯ୍ୟ ବୁଦ୍ଧି ତୋର ନାହିଁ କ ଅରେ ମୂରୁଖ । ୧୪୨ ।
ବାତୁଳ ପର୍ଯ୍ୟନ୍ତ ଦେଖାଯାଏ ତୋର କର୍ମ ।
ହୁଷ୍ଟ ପୁଷ୍ଟ ହୋଇ ଏଡ଼ୁଅଛୁ ନିଜ ଧର୍ମ । ୧୪୩ ।
ମୋର ବୋଲ କରି ଧୀରେ ଧୀରେ ମାର୍ଗେ ଚଳ ।
ନୋହିଲେ ମୋଠାରୁ ପାଇବୁଟି ପ୍ରତିଫଳ । ୧୪୪ ।
ରହୂଗଣ ମୁଖରୁ ସେ ଏ ବଚନ ଶୁଣି ।
ସେ ଜଡ଼ଭରତ ମନେ ବିସ୍ମରନ୍ତି ପୁଣି । ୧୪୫ ।
ବୋଲଇ ଦେଖ ଏପରି ବଡ଼ ରାଜା ହୋଇ ।
ଅଜ୍ଞାନ ଲୋକ ପର୍ଯ୍ୟନ୍ତେ ବଚନ କହଇ । ୧୪୬ ।
ମୁଁ ଯେବେ ଏହାକୁ ଆଜ ନ କହିବି କଥା ।
ବ୍ୟାଧ ମଳ ପ୍ରାପ୍ତ ମହିବ ଏ ମହାରଥା । ୧୪୭ ।
ଦେବୀଅଙ୍କେ ଦେଇ ମଲ ନରପତି ଯେସନେ ।
ସେହିପରି ରହୂଗଣ ମରିବ ଅଜ୍ଞାନେ । ୧୪୮ ।
ଏସନ ମତ ପାଷ୍ଟଣ ନୃପ ଭରତ ଜ୍ଞାନୀ ।
ରହୂ ରାଜାଙ୍କୁ କହନ୍ତି ଅତି ତତ୍ତ୍ୱବାଣୀ । ୧୪୯ ।
କୋମଳ ଅମୃତ ସୁବଚନ ମୁଖେ ଭାଷି ।
ବୋଲନ୍ତି ହୋ ସାବଧାନେ ଶୁଣ ସୂର୍ଯ୍ୟବଂଶୀ । ୧୫୦ ।
ଏତେ ବଡ଼ ରାଜା ତୁମ୍ଭେ ସୂର୍ଯ୍ୟବଂଶେ ଜନ୍ମି ।
ଅଜ୍ଞାନ ଲୋକ ପର୍ଯ୍ୟନ୍ତ ମର କଥା ଭ୍ରମି । ୧୫୧ ।
ଶୁଣି ନାହିଁ କି ହୋ କର୍ଣ୍ଣେ ମହିମା ହରିର ।
ତୁହିର ଭିଆଣ ଅଟେ ସମସ୍ତ ଶରୀର । ୧୫୨ ।

ସକଳ ଅମ୍ଭାରେ ସେହୁ ତତ୍ୱ ପୂର୍ଣ୍ଣ ଥାଏ ।
ଅଛନ୍ତି ଯେ ବକେ କର କାଷ୍ଠ ବ୍ରହ୍ମଯାଏ । ୧୫୩ ।
ସକଳ ହୃଦୟେ ବସିଛନ୍ତି ଅନ୍ତର୍ଯ୍ୟାମୀ ।
ଏହା ନ ଜାଣି ତୁ ମାୟା ମୋହେ ମରୁ ଭ୍ରମି । ୧୫୪ ।
ବିମାନ ଉପରେ ବସି ଅଛୁ ମହାସୁଖେ ।
ଦହୁଛୁ ଅମ୍ଭାକୁ ଅମ୍ଭା ନ ଜାଣୁ ବିବେକେ । ୧୫୫ ।
ଚଞ୍ଚଳ ହୋଇବାକୁ ତୁ ପାଉଛୁ ବିମୁଖ ।
ବହିବା ଲୋକର କଷ୍ଟ ନ ଦେଖନ୍ତୁ ଦୁଃଖ । ୧୫୬ ।
ବିମାନ ଉପରେ ତୁହି କରଛୁ ବିଜୟେ ।
ବହିବା ଲୋକର ଦୁଃଖ ନ ଦେଖୁ ତୁ ରାୟେ । ୧୫୭ ।
ବୁଦ୍ଧିମାନ ସୁପଣ୍ଡିତ ସାଧୁ ଯେତେ ଲୋକ ।
ସେହୁ ବୋଲନ୍ତି ସକଳ ଅମ୍ଭା ଅଟେ ଏକ । ୧୫୮ ।
ନିର୍ଦ୍ଦୟ ନିଦାରୁଣ ତ ଅଟେ ଯେଉଁ ନର ।
ସେ ହିଂସା ଏ ବ୍ରହ୍ମାଣ୍ଡରେ କରେ ଅବିଗ୍ଭର । ୧୫୯ ।
ରାକ୍ଷସ ପର କର୍ମ୍ମା ତୁ କହୁଛୁ ଅନୀତ ।
ମନେ ନ ବିଗ୍ଭରୁ ସର୍ବଭୂତେ ହରି ଛନ୍ତି । ୧୬୦ ।
ଏମନ୍ତ ବୋଲନ୍ତି ଭରତ ବହୁଁ ଜ୍ଞାନବାଣୀ ।
ଶୁଣି କରି ରହୂରାଜା ମନେ ଭାବା ଶୁଣି । ୧୬୧ ।
ହୃଦରେ ପାଞ୍ଚିଲେ ଏହୁ କେବଣ ପୁରୁଷ ।
ନ ଜାଣେ ମୁଁ ଏହାଠାରେ ଅରଜିଲି ଦୋଷ । ୧୬୨ ।
ଏସନ ମନେ ପାଞ୍ଚିଣ ସୂର୍ଯ୍ୟବଂଶ-ଧର ।
ବିମାନରୁ ସେ ଓହ୍ଲାଇ ପଡ଼ିଲା ସତ୍ୱର । ୧୬୩ ।

ଦେଖିଲା ସୁବୁଦ୍ଧି ଅଙ୍ଗ ଅତି ଶୁଭଲକ୍ଷଣେ ।
ଶଙ୍ଖ ଚକ୍ର ଅର୍ଦ୍ଧ ଚନ୍ଦ୍ର ବଜ୍ରାଙ୍କୁଶ ଦେଖେ । ୧୬୪ ।
ଶତଦଳ ପଦ୍ମ ପ୍ରାୟେ ଉଲ୍ଲାସେ ବଦନ ।
ହରିନାମ ବୁଝି ଢଗୁଅଶ୍ରୁ ଦେହେ ବର୍ଷି । ୧୬୫ ।
ନଗରେ ସେ ରଘୁରାଜା ଗୃହେଁ ଧୀର କର ।
ଶିଷ୍ଟ ଚିହ୍ନ ଦେଖି ପ୍ରଣମିଲା ପାଦ ଧର । ୧୬୬ ।
ବୋଇଲା ହେ ବିପ୍ର ତୁମ୍ଭେ କେବଣ ମହାତ୍ମା ।
ଚିହ୍ନି ନ ପାରିଲି ମୁହିଁ ପାମର ଦୁରାତ୍ମା । ୧୬୭ ।
କେବଣ ଦେଶେ ତୁମ୍ଭର ଅଟେ ନିଜ ବାସ ।
କିରୂପେ ଏଠାରେ ଆସି ହୋଇଲ ପ୍ରବେଶ । ୧୬୮ ।
ଅମୋଘ ପିଣ୍ଡକୁ ତୁମ୍ଭେ କରିବାକୁ ଦାନ ।
ତେଣୁ ଅବା ଏଥେଁ ଆସି ମିଳିଲ ଆପଣ । ୧୬୯ ।
ତୁମ୍ଭେ ବିବେକ ପଣ୍ଡିତ ଏତେ ସାଧୁ ଜ୍ଞାନୀ ।
ପାଲିଙ୍କି ମୁଁ ବୁହାଇଲି ତୁମ୍ଭଙ୍କୁ ନ ଚିହ୍ନି । ୧୭୦ ।
ଛାର ମାନବ ହେବାରୁ ନ ପାରିଲି ଜାଣି ।
ଏହା ଜାଣି ଦୟାକର ଅହେ ଦ୍ୱିଜମଣି । ୧୭୧ ।
ଏ ମାୟା ମୋତେ ପଡ଼ିଣ ଭ୍ରମ ମୋର ଦେହୀ ।
ପ୍ରାଣିଙ୍କ ଠାରୁ ଏ ଭୋଗ ଶିଖିଅଛି ମୁହିଁ । ୧୭୨ ।
ମୁହିଁ ତାହାଙ୍କ ସଙ୍ଗରେ ଗୃହକର୍ମେ ପଡ଼ି ।
ରହିଅଛି ଗୋବିନ୍ଦଙ୍କୁ ବିସ୍ମୃତରେ ଏଡ଼ି । ୧୭୩ ।
ଏବେ ଯେ ଜାଣିଲି ମୋର ଫିଟିଲା ସଙ୍କଟେ ।
ପାଇଲି ଯେଣୁ ବ୍ରାହ୍ମଣ ପୁରୁଷଙ୍କ ଭେଟ । ୧୭୪ ।

ଆତ୍ମାର ଯେ ଗତାଗତ ତା କହିବା ହେଉ ।
ଆପଣଙ୍କ ମୁଖୁଁ ଶୁଣି ପାପ ଘନ୍ତୁ ଯାଉ । ୧୭୫ ।
ଏମନ୍ତ ବୋଲନ୍ତେ ରାଜା ଶୋକ ଗଦଗଦେ ।
ନମିଲେ ଯାଇଁ ସେ ଜଡ଼-ଭରତଙ୍କ ପାଦେ । ୧୭୬ ।
ରାଜା ମୁଖରୁ ଏମନ୍ତ ଶୁଣିଣ ଭରତ ।
ବୋଇଲେ କହିବା ତେବେ ଶୁଣ ଜ୍ଞାନବନ୍ତ । ୧୭୭ ।
ଆତ୍ମାରେ ଦେଖ କହୁଛ ମୋର ନିଜ କାୟ ।
ସକଳ ଜୀବ ଦଶନ୍ତି ମୋତେ ଏକପ୍ରାୟ । ୧୭୮ ।
ଆଉ ଏକ କଥା ରାଜା କହୁ ଅଛୁ ଶୁଣ ।
ବୁଝିଲେ ଗୋବିନ୍ଦ ଲୀଳା ସବୁ କଥା ଜାଣ । ୧୭୯ ।
ସଂସାରେ କେ ମରୁଛି କେ ମାରୁ ଅଛି କହ ।
ବସିବା ସବୁ କହିବା ଅଟେ ଏକ ଦେହ । ୧୮୦ ।
କେ କାହାକୁ ଓଲଗଇ କେ କଲ୍ୟାଣ କରେ ।
କେହୁ ନମସ୍କାର କରୁ କେ ନମେ ଆଗରେ । ୧୮୧ ।
କେ କାହାର ନିଜ ଅଟେ କେ କାହାର ପର ।
କେ କାହାର ଅନ୍ତର କେ ଅଟେ କାହା ଘର । ୧୮୨ ।
କେ କାହାର ବନ୍ଧୁ ଅଟେ କେ କାହାର ଜାତି ।
କେ କାହା ଭାରିଜା ଅଟେ କେ କାହାର ପତି । ୧୮୩ ।
ତୁ ଯେବେ ଆରାଧି ଲୋଡ଼ୁ ଅଛୁ ଗୋବିନ୍ଦଙ୍କୁ ।
ଶରୀରରେ ଅଛି ଚାହିଁ ଦେଖ ତୋ ଆତ୍ମାକୁ । ୧୮୪ ।
ଆତ୍ମାକୁ ତୁ ଯେବେ ଚିହ୍ନି ପାରୁ ନିଶ୍ଚୟେ ।
ଦେଖିବୁ ଅଛନ୍ତି ଜଗନ୍ନାଥ ସର୍ବ ଦେହେ । ୧୮୫ ।

ଯେବଣ ପୂର୍ବେ ଅଛନ୍ତି କହିବା ତା ଶୁଣ ।
ସବୁ ଜୀବରେ ଲଲାଟରନ୍ଧ୍ରେ ଛନ୍ତି ପୁଣ । ୧୮୬ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀହରି କରେ ଧରି ।
ପରମ ହଂସ ରୂପରେ ଶବ୍ଦ ଛନ୍ତି କରି । ୧୮୭ ।
ସେହି ଶବଦକୁ ଜାଣି ଯେବେ ହେଇ ପାରୁ ।
ଅବଶ୍ୟ ହରିଙ୍କି ଦେଖି ତରିବୁ ଏପାରୁ । ୧୮୮ ।
କେବଳ ଏକା ବର୍ଣ୍ଣିଣ ଶବଦେ ନାମକୁ ।
ପରମହଂସ ଦ୍ୱାରରେ ମନ ନେଇ ଖଞ୍ଜୁ । ୧୮୯ ।
ଷଡ଼ଚକ୍ର ଭେଦଣ ଯେ ହାଡୋଲେ ପବନ ।
ତୁ ତାହାକୁ ନାସାରନ୍ଧ୍ରେ କର ଅନୁମାନ । ୧୯୦ ।
ଆବର ଗଙ୍ଗା ଯମୁନା ସରସ୍ୱତୀ ନୀରେ ।
ଅନୁକ୍ଷଣ ବହୁଥାନ୍ତି ହରିଙ୍କ ମଥାରେ । ୧୯୧ ।
ପବନ ଥକାଇ ଯେବେ ଟେକିବୁ ଉଜାଣି ।
ସେ ଧାର ବନ୍ଧନ ହୋଇ ରହିବ ତ୍ରିବେଣୀ । ୧୯୨ ।
ସେ ତ୍ରିବେଣୀ ଉପରେ ଯେ ମାନ ସରୋବର ।
ସେ ସ୍ଥାନେ ଫୁଟିଛି ପୁଷ୍ପ କମଳ କେଶର । ୧୯୩ ।
ସେ କେଶର ମଧ୍ୟରେ ଯେ ଭ୍ରମର ଭ୍ରମୁଛି ।
ତହିଁରେ ପରମହଂସ ଆନନ୍ଦେ ଭ୍ରମୁଛି । ୧୯୪ ।
ସେ ପରମହଂସ ଏନ୍ତୁ ଚଢ଼ି ମହାରାଜା ।
କାଳପଦ୍ମ ନିରଞ୍ଜନ ତୋତେ ହେବେ ବୁଝା । ୧୯୫ ।
ପ୍ରାଣାପାନୋଦାନ ବ୍ୟାନ ସମାନ ଏ କର ।
ଜୀବ ସହର ରଖ ତୁ ଅନାହତ ସ୍ୱର । ୧୯୬ ।

ତେବେ ତୋ କ୍ଷୁଧା ପିପାସା ଅଙ୍ଗୁ ଯିବ ଛୁଟି ।
ଏ ବେଳ ଛୁଟିଲେ ମୃତ୍ୟୁ ନ ପାରିବ ଘୋଟି । ୧୯୭ ।
ମୂଳ କମଳ ଭୁ ସ୍ଥପି ବସ ଅନୁଧ୍ୟାନେ ।
ରୋଧ ଦଶଦ୍ୱାର ଊର୍ଦ୍ଧ୍ୱମୁଖୀ ମୁଦ୍ରା ସ୍ଥାନେ । ୧୯୮
ପବନକୁ ଏକାପୂର୍ବେ ଯେବେ ଚଳାଇବୁ ।
ତେବେ ତୁ ଅଯତ୍ନ ହୋଇ ଝପାରେ ରହିବୁ । ୧୯୯ ।
ଶୁଣ ଅରେ ସୂର୍ଯ୍ୟବଂଶୀ ରଘୁ ନରପତି ।
ଅର୍ଜିବୁ ଶ୍ରୀହରି ଅଶେଷ ଋଦ୍ଧ ଯଶ କୀର୍ତ୍ତି । ୨୦୦ ।
ଏହି କଥାରେ ତୁ ମନ ଲଗା ମହାରାଜା ।
ଆତ୍ମାକୁ ହୃଦରେ ଚିନ୍ତି କର ବସ୍ତୁ ପୂଜା । ୨୦୧ ।
ପୂଜା କଲେ ଶ୍ରୀଗୋବିନ୍ଦ କରିବେ କରୁଣା ।
କରୁଣା କଲେ ନୋହିବ କିଛୁ ତୋତେ ବଣା । ୨୦୨ ।
ପୂର୍ବଜନ୍ମରେ ତୋହର ଥିଲା କିଛି ପୁଣ୍ୟ ।
ତେଣୁ ଆମ୍ଭଙ୍କୁ ଭେଟିଲୁ ଆହେ ରଘୁବ୍ରାଣ । ୨୦୩ ।
ହେ ସଜ୍ଜନ ଝପାରେ ତୁ ଦେଖ ଦେହ ଗଢେ ।
ଚକ୍ଷୁ ନାସା କର୍ଣ୍ଣ ଶିର ପାଦ ପାଣି ଯେତେ । ୨୦୪ ।
ଏହାକୁ ମଣନ୍ତି ଭିନ୍ନ ଭିନ୍ନ ସର୍ବପ୍ରାଣୀ ।
ଆତ୍ମାର ଗତାଗତକୁ ନ ପାରନ୍ତି ଜାଣି । ୨୦୫ ।
କେବଳ ଚୈତନ୍ୟେ ବ୍ରହ୍ମ ଜ୍ଞାନ ଜଗନ୍ନାଥ ।
ଭକ୍ତ ଉଦ୍ଧାର ଅଟଇ ଏ ନୃସିଂହ ଗ୍ରନ୍ଥ । ୨୦୬ ।
ଏହା ଶୁଣି ରଘୁରାଜା ହୋଇଲେ ଆନନ୍ଦ ।
ଉଠି ଭରତର ଯାଇ ଧଇଲେକ ପାଦ । ୨୦୭ ।

ହୋଇଲି ମୁଁ ମୋକ୍ଷ ବୋଲି ପ୍ରଣାମ ଯେ କଲେ ।
ଜଡ଼ଭରତ ସେଠାରୁ ଅନ୍ତର୍ଦ୍ଧାନ ହେଲେ । ୨୦୮ ।
ତହୁଁ ଉତ୍ତାରୁ ସେ ରାଜା ରାଜ୍ୟେ ଗଲେ ଚଳି ।
ଭଜଲେ ପରମ ଦୃଢ଼େ ମକ୍ତି ବନମାଳୀ । ୨୦୯ ।
ଅହେ ଯାଠୁ ସୁଜ୍ଞଜନେ ଶ୍ରବରସେ ରସ ।
ଶ୍ରୀହରି ଚରଣତଳେ ପୀତାମ୍ବର ଦାସ । ୨୧୦ ।

———

# ଦୁର୍ବୋଧ୍ୟ ଶବ୍ଦର ଅର୍ଥ ।

ପଦ　　　　　ଦୁର୍ବୋଧଶବ୍ଦର ଅର୍ଥ

୧—ଅନମିତେ=ଅନମିତ୍ତେ—ବିନାକାରଣରେ ।

୨—ପରଗୁଣ—ସ୍ୱଭାବ, ଅବସ୍ଥା, ଗାଆଁ ପରଗୁଣ ଧୋବାତୁଠରୁ ଦିଶେ ।

୯—ଋଷଭ—ଭରତଙ୍କର ପିତା, ଭାଗବତବର୍ଣ୍ଣିତ ବିଷ୍ଣୁଙ୍କ ଦ୍ୱାବିଂଶ ଅବତାର ମଧ୍ୟରୁ ଅଷ୍ଟମ ଅବତାର ଅଟନ୍ତି ।

୧୧—ଭ୍ରତଖଣ୍ଡ=ଭରତଖଣ୍ଡ—ଭାରତବର୍ଷ, ଭରତଙ୍କ ନାମାନୁସାରେ ହୋଇଅଛି, ତତ୍ପୂର୍ବେ ଭାରତବର୍ଷର ନାମ 'ଅଜନାଭ' ଥିଲା ।

୧୨—ଲଇ—ଶିକ୍ଷ ।

୧୮—ଶ୍ରୀବସ୍ତ ଚିହ୍ନ=ଶ୍ରୀ ( ଲକ୍ଷ୍ମୀ ) ବତ୍ସ ( ପ୍ରିୟ ) ଚିହ୍ନ । ବିଷ୍ଣୁଙ୍କ ବକ୍ଷସ୍ଥଳର ଲୋମାବର୍ତ୍ତ ବିଶେଷ । ଏହି ଚିହ୍ନକୁ ଲକ୍ଷ୍ମୀ ଅତ୍ୟନ୍ତ ଭଲ ପାଆନ୍ତି ।

୨୩—ବଢି—ବଢ଼ାଇ ।

୩୨—ଜୀବଛନ୍ଦା ଦ୍ୱାର—ପବନ—ଶରୀରସ୍ଥ ପଞ୍ଚପ୍ରାଣ ।

୫୦—କୁହାଟି—ଉଚ୍ଚସ୍ୱର କରି, ପାଟିକରି ।

୫୫—ଜାତସ୍ମର—ଯେଉଁଲୋକ ପୂର୍ବଜନ୍ମ ବୃତ୍ତାନ୍ତ ଜାଣନ୍ତି ସେମାନଙ୍କୁ ଜାତିସ୍ମର କହନ୍ତି ।

୬୦—ଲେଉଟି—ଅଧୋଗତିର ବିପରୀତ ଦିଗକୁ ଯାଇ ।

୬୩—ମହାତମା= ମହାତ୍ମା ।

୬୪—ପାରୁଶ=ପାର୍ଶ୍ୱ—ପାଖ, ପ୍ରବାର—ଗୋତ୍ରର ଶାଖା ।

ପଦ — ଦୁର୍ବୋଧଶବ୍ଦର ଅର୍ଥ

୬୭--ନର୍ଜିତ--ପରାଜିତ ।
୬୯--ଛଅଶାସ୍ତ୍ର--ଷଡ଼୍‌ଦର୍ଶନ ବା ବେଦର ଷଡ଼ଙ୍ଗ ।
୭୦--ଅନୁବ୍ରତେ=ଅନବରତ—ସର୍ବଦା ।
୭୧—ଇନ୍ଦ୍ରିୟ ଦମନ=ଇନ୍ଦ୍ରିୟ ଦମନ କଲେ ।
୭୨—ଅମରଷ=ଅମର୍ଷ—କ୍ରୋଧ । ତ୍ରାସ—ବେଦନା ।
୭୩—ପୃଥୂ—ସ୍ଥୂଳ, ମୋଟା ।
୭୭—ଝାସ—ନିଆଁକୁ ଡେଇଁ ପଡ଼ିବା ।
୮୭—ସମାସ୍ୟା=ସମସ୍ୟା—ଏଠାରେ ଏହାର ଭାବାର୍ଥ ଉପଦେଶ ।
୮୯—ମୂର୍ଦ୍ଧନ ଫୁଟିଲା—ମୁଣ୍ଡ ଫାଟିଗଲା ।
୯୧—ପତନ—ମୃତ୍ୟୁ ।
୯୨—ବଳିଭୋଜା—ବଳିରୂପ ଭୋଜନ ।
୯୩—ନରଜନ୍ତୁ—ନରପଶୁ, ବଳିମନ୍ତ୍ରେ ଉତ୍ସର୍ଗୀକୃତ ନର ।
୯୮—ନିର୍ଲୋଭି ସ୍ଥଳେ ନିର୍ଲୋଭ, ଏବଂ ନିରାହାରୀ ସ୍ଥଳେ ନିରାହାର ହେବ ।
୯୯—ହସେ ଟହ ଟହ—ଅଟ୍ଟହାସ କରେ ।
୧୦୨—ଆଳେ—ଶୁଣିବେ ।
୧୦୩--ଧାଇଁକାରେ—ଝଟିତି, ଶୀଘ୍ର ।
୧୦୪--ନିର୍ବନ୍ଧେ—ଦୃଢ଼େ ।
୧୦୭--ଅର୍ଗଳ—କବାଟର କିଳଣୀ । ଗୃର—ଦୂତ ।
୧୦୮--ବ୍ରହ୍ମରନ୍ଧ୍ର—ମସ୍ତକ ମଧ୍ୟରେ ବ୍ରହ୍ମଙ୍କ ଅବସ୍ଥିତ ବ୍ରହ୍ମତାଳୁ ।
୧୦୯--ପଦ୍ମାସନ—ଯୋଗ ସାଧନର ଉପଯୋଗୀ ଆସନ ବିଶେଷ ।
—ଅନାଦି—ବନ୍ଧୁ ।

ପଦ ଦୁର୍ବୋଧଶବ୍ଦର ଅର୍ଥ

୯୪—ଆଦ୍ୟକନ୍ଦ—(ଆଦ୍ୟ=ପ୍ରଥମ, କନ୍ଦ=ମୂଳ) ଈଶ୍ୱର ।

୯୫---ଭୈରବୀଗଣ—ଯୋଗିନୀ ସମୂହ । ବିକଟାଳେ—ଭୟଙ୍କର ରୂପେ ।

୧୧୬--ମହାମାଈ—ମହାମାୟା, ଦୁର୍ଗା ।

୧୧୭—ମୁରଦାରୁଣ—(ମୁର=ମୁରାସୁର, ଦାରୁଣ=ନିର୍ଦ୍ଦୟ) ନିର୍ଦ୍ଦୟ ମୁରାସୁର ।

ଲାଗନ୍ତି ଭକ୍ତ ଭୁଲେ—ଭକ୍ତ ସଙ୍ଗେ ଲାଗନ୍ତି, ଭକ୍ତର ବାଞ୍ଛା-ପୂରଣ କରନ୍ତି (ତୁଲେ=ସଙ୍ଗେ)

୧୨୩—ମକରନ୍ଦ—ପୁଷ୍ପମଧୁ । ଗୋବିନ୍ଦ ମକରନ୍ଦ—ଈଶ୍ୱରଙ୍କ ପାଦ-ପଦ୍ମମଧୁ । ଭୋଲ – ବାଦକ ।

୧୨୫—ପଡ – ଖାଦ୍ୟପଦାର୍ଥ, ପିଠା ।

୧୨୬ – ହାନ୍ଦୋଳ – ବିମାନ, ପାଲିଙ୍କି ।

୧୨୮ – ଯାବତ – ସମସ୍ତ ; ଦେହ୍ମା – ଦେହ ।

୧୩୧ – ରଘୁବୀଣ – ରଘୁରାଜା (ରାଣ-ରାଜା) ।

୧୩୬ – ଏଡ଼େ ସମ୍ଭବ – ଏଡ଼େ ସମର୍ଥ ।

୧୩୯ – ଚରଣ ପହଞ୍ଚାଇ – ଗୋଡ଼ ଧୀରେ ପକାଇ ।

୧୪୦ – ହାନ୍ଦୋଳନ୍ତେ – ଦୋହଲି ଯିବାରୁ; ତରଜା-ତର୍ଜନ ।

୧୪୧ – ବାଇ – ପାଗଲ ।

୧୪୩ – ଏଡୁଅଛୁ – ଛଡୁଅଛୁ, ତ୍ୟାଗ କରୁଅଛୁ ।

୧୪୭ – ମହାରଥା – ମହାରଥୀ ।

୧୫୧ – ଭ୍ରମେ—ଭ୍ରମରେ ପଡ ।

୧୫୨—ଭୁଆଣ—ସୃଷ୍ଟି ।

ପଦ ଦୁର୍ବୋଧଶବ୍ଦର ଅର୍ଥ

୧୬୯ – ଅମୋକ୍ଷ – ମୁକ୍ତିର ଅଯୋଗ୍ୟ ।

୧୭୦ – ବିବେକ – ବିବେକୀ ।

୧୭୫ – ଆତ୍ମାର ଗତାଗତ – ଆତ୍ମାର ବନ୍ଧନ ଓ ମୁକ୍ତି ।

୧୮୧ – ଓଳଗଇଁ – ନମସ୍କାର କରେ ।

୧୮୨ – ଅନ୍ତର – ପର ।

୧୮୬ – ଲଲାଟ ଚକ୍ର – ଷଟ୍ ଚକ୍ର ମଧ୍ୟରୁ ଲଲାଟସ୍ଥ ଚକ୍ର ।

୧୮୭ – ପରମହଂସ – ପରମବ୍ରହ୍ମ । ଶବ୍ଦ – ପ୍ରଣବ, ଓଁକାର ।

୧୯୦ – ଷଡ଼୍‌ଚକ୍ର – ହାଡ଼ୋଳେ – ଗଙ୍ଗାସ୍ମୃତ କରେ ।
ଗଙ୍ଗା ଯମୁନା ସରସ୍ୱତୀ = ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାମକ ପ୍ରଧାନ ନାଡ଼ୀତ୍ରୟ ।

୧୯୨ – ପବନ ଥକାଇ – ପବନ୍ ବନ୍ଦକରି, ପବନ ରୋଧକରି ।
ଟେକିକୁଣ୍ଡଳିଣୀ – ପ୍ରାଣ ବାୟୁକୁ (ବିପରୀତ ଦିଗକୁ) ଗତି କରାଇବୁ ।
ତ୍ରିବେଣୀ – ନାଡ଼ୀତ୍ରୟର ମିଳନ ସ୍ଥାନ ।

୧୯୩ – ମାନସରୋବର – ବ୍ରହ୍ମରନ୍ଧ୍ରକୁ ଉଦ୍ଦେଶ କରାଯାଇଅଛି ।
ପୁଷ୍ପକମଳ କେଶର=ସହସ୍ରଦଳପଦ୍ମ ।

୧୯୪ – ଭ୍ରମର – ଜୀବାତ୍ମାକୁ ଲକ୍ଷ୍ୟ କରାଯାଇ ଅଛି ।
ନିରଞ୍ଜନ – (ନିଃ=ନାହିଁ, ଅଞ୍ଜନ = କଳୁଷ) ବ୍ରହ୍ମ ।

୧୯୬ – ପ୍ରାଣାଦ – ପଞ୍ଚପ୍ରାଣ ବାୟୁର ନାମ ।
ଅନାହତପୁରୀ–ଷଟ୍‌ଚକ୍ର ମଧ୍ୟସ୍ଥ ଚକ୍ରବିଶେଷ, ଅନାହତ ଚକ୍ର ।

୧୯୮ – ମୂଳ କମଳ—ମୂଳାଧାର ଚକ୍ର ।

ସମାପ୍ତ ।

# ବିଜ୍ଞାପନ ।



ଅନ୍ୟାନ୍ୟ ପୁସ୍ତକ ସଙ୍ଗ ଏହି

## ଜଡଭରତ ଚରିତ

ନିମ୍ନଲିଖିତ ଠିକଣାରେ

ବିକ୍ରୟ ହୁଏ ।

---

ଶ୍ରୀରାଧାକୃଷ୍ଣବସୁ, ଏମ୍, ଏ,

ମାଣିକଘୋଷ ବଜାର,

ପୋଃ ଅଃ ଚାନ୍ଦନୀଚୌକ,

କଟକ ।